# ଆମ ପରିବେଶ
# ତା'ର ସୁରକ୍ଷା



# ଆମ ପରିବେଶ ତା'ର ସୁରକ୍ଷା

ଲେଖକ :

**ରମେଶ ନନ୍ଦ**

ପ୍ରକାଶକ :

**ସହାୟକ**

ବାଖରାବାଦ

କଟକ-୭୫୩୦୦୨

ପ୍ରଥମ ସଂସ୍କରଣ : ୧୯୮୮

ଦ୍ୱିତୀୟ ସଂସ୍କରଣ : ୧୯୯୧

ମୁଦ୍ରଣ :

**ନନ୍ଦକିଶୋର ପ୍ରେସ୍**

ଡଗରପଡ଼ା, କଟକ-୨

ମୂଲ୍ୟ ୭ ଟଙ୍କା

# ବହି ବିଷୟରେ ପଦେ

ଆମର ଏଇ ଶତାବ୍ଦୀର ଶେଷଭାଗରେ ପରିବେଶ ସମ୍ପୂର୍ଣ୍ଣ ଦୂଷିତ ହୋଇପଡ଼ୁଛି । ଅହରହ ଗାଡ଼ିଘୋଡ଼ାର ବିଷାକ୍ତ ଧୂଆଁ, ଖୋଲା ଚିମିନୀର ଦୂଷିତ ବାଷ୍ପ ବାୟୁମଣ୍ଡଳରେ ମିଶି ଆମର ପରିବେଶକୁ ପ୍ରଦୂଷିତ କରୁଛି । ଏହାକୁ ଆମେ ପରିବେଶ ପ୍ରଦୂଷଣ ନାମରେ ନାମିତ କରୁଛୁ । ସେହିପରି ନଭମଣ୍ଡଳରେ ଦ୍ରୁତଗାମୀ ଜେଟ୍ ଓ ବିମାନ ଯାତ୍ରା ଫଳରେ ଓଜୋନସ୍ତର ବିପର୍ଯ୍ୟସ୍ତ ହୋଇପଡ଼ୁଛି । ଜଳଭାଗରେ ବିଭିନ୍ନ ମାରାତ୍ମକ ନ୍ୟୁକ୍ଲିଅର ବୋମା ବିସ୍ଫୋରଣ ପରୀକ୍ଷା ପାଇଁ କରାଯାଉଥିବାରୁ ସମୁଦ୍ରଜଳ ବିଷାକ୍ତ ହୋଇପଡ଼ୁଛି । ଶିଳ୍ପବର୍ଜ୍ୟ, ବସ୍ତି ଓ ଶବରେ ନଦୀଜଳ ଆଜ ସମ୍ପୂର୍ଣ୍ଣ ଦୂଷିତ । ସ୍ଥଳଭାଗରେ ପ୍ରଦୂଷଣର ମାତ୍ରା ବଢ଼ି ଚାଲିଛି ।

ଅପର ପକ୍ଷରେ ଜଙ୍ଗଲ ବ୍ୟାପକ ଭାବରେ କଟାଯାଉଥିବାରୁ ପ୍ରଦୂଷଣର ମାତ୍ରା ବଢ଼ି ଚାଲିଛି । ପରିବେଶ ଆଜି ବିଷାକ୍ତ । ଜଙ୍ଗଲ ବା ବୃକ୍ଷଲତା ପରିବେଶର ସୁରକ୍ଷା କରନ୍ତି । ଜଙ୍ଗଲକୁ ନିର୍ବିଚାରରେ ଧ୍ୱଂସ କରାଯାଉଥିବାରୁ ପରିବେଶ ଆଜି ବିଷାକ୍ତ । ସୁସ୍ଥ ଭାବରେ ବଢ଼ିବା ପାଇଁ ସୁସ୍ଥ ପରିବେଶ ଆବଶ୍ୟକ । ସୁସ୍ଥ ଶରୀର ଓ ମନ ପାଇଁ ସୁସ୍ଥ ପରିବେଶ ନିହାତି ଦରକାର ।

ଏହି ଦିଗରେ ଲୋକମତ ଜାଗ୍ରତ କରି ପରିବେଶର ସୁରକ୍ଷା ନିମନ୍ତେ ଧ୍ୟାନ ଦେବା ଲାଗି ଏ ପୁସ୍ତକରେ ଉଦ୍ୟମ କରାଯାଇଛି । ଏହା ସବୁଶ୍ରେଣୀର ଛାତ୍ର-ଛାତ୍ରୀ, ଯୁବକ ଓ ପ୍ରୌଢ଼ଲୋକଙ୍କ ପାଇଁ ଉପାଦେୟ ହେଲେ ଶ୍ରମ ସାର୍ଥକ ହେବ ।

ଲେଖକ :

**ରମେଶ ନନ୍ଦ**

# ସୂଚୀ





# ଆମ ପରିବେଶ

ମଣିଷ ପ୍ରକୃତିର ପରିବେଶ ମଧ୍ୟରେ ବଞ୍ଚେ । ସୁସ୍ଥ



ଭାବରେ ବଞ୍ଚିବା ପାଇଁ ସୁସ୍ଥ ପରିବେଶ ଆବଶ୍ୟକ । ପ୍ରକୃତି

ଆମକୁ ଗଛଲତା, ବଣଜଙ୍ଗଲ, ପାହାଡ଼ ପର୍ବତ ଦେଇଛନ୍ତି । ନଦୀ ଝରଣା ଓ ସମୁଦ୍ର ସବୁ ପ୍ରକୃତିର ଦାନ । ଘରଦ୍ୱାର ଓ ଗୃହବାସ କରିବା ପାଇଁ ସମତଳ ଉର୍ବର ଭୂମି ମଧ୍ୟ ପ୍ରକୃତିର ଦାନ । ମଣିଷ ବଞ୍ଚି ରହିବା ପାଇଁ ମୁକ୍ତ ବାୟୁ, ନିର୍ମଳ ଜଳ ଓ ଖାଦ୍ୟର ଆବଶ୍ୟକତା ରହିଛି । ଏସବୁ ଆମେ ପ୍ରକୃତିରୁ ପାଉ । ଏଥିପାଇଁ ମଣିଷ ପ୍ରକୃତି ଉପରେ ନିର୍ଭର କରେ ।

ପ୍ରଦୂଷଣ—

ମଣିଷର ସୁସ୍ଥ ମନ ପାଇଁ ଏକ ସୁସ୍ଥ ପ୍ରାକୃତିକ ପରିବେଶ ଲୋଡ଼ା । ଏବେ କିନ୍ତୁ ସେହି ପ୍ରାକୃତିକ ପରିବେଶ ଦୂଷିତ



ହେବାରେ ଲାଗିଛି । ଏହି ପରିବେଶ କ୍ରମେ କ୍ରମେ ଦୂଷିତ ହୋଇ ଏକ ଚରମ ସ୍ତରରେ ପହଁଞ୍ଚିଛି । ପରିବେଶର ଏହି

ଦୂଷିତ ପ୍ରକ୍ରିୟାକୁ 'ପରିବେଶ ପ୍ରଦୂଷଣ' ବୋଲି କୁହାଯାଉଛି। ଏହି ପ୍ରଦୂଷଣ ଫଳରେ ଆମର ଏ ମାତୃଗ୍ରହ ପୃଥିବୀ ଦିନେ ନିଶ୍ଚୟ ଧ୍ୱଂସ ପାଇଯିବ। ଆମର ଏହି ପୃଥିବୀ ମା'କୁ ଧ୍ୱଂସ ମୁଖରୁ ରକ୍ଷା କରିବାକୁ ହେଲେ ଆମମାନଙ୍କୁ ଏ ବିଷୟରେ ସଚେତନ ହେବାକୁ ପଡ଼ିବ। ତେବେ ଯାଇ ଆମେ ଆମ ପରିବେଶର ସୁରକ୍ଷା କରିପାରିବା। ପ୍ରଦୂଷଣର ପ୍ରତିରୋଧ କରିପାରିବା। ନହେଲେ ଏ ମଣିଷ ସମାଜ ଓ ମାନବ ସଭ୍ୟତା ପୃଥିବୀ ବକ୍ଷରୁ ଲୋପ ପାଇଯିବ।



ପ୍ରଦୂଷଣର ଲକ୍ଷଣ—

ବିଂଶ ଶତାବ୍ଦୀର ଏଇ ଶେଷଭାଗରେ ମଣିଷ ଜାତି ଉପରକୁ ଏଇ ଭୟାନକ ବିପଦ ମାଡ଼ି ଆସିଛି। ସମଗ୍ର ପରିବେଶ ଆଜି ପ୍ରଦୂଷିତ ହୋଇଯାଇଛି। ତା'ର କେତେକ

ଲକ୍ଷଣ ଏଠାରେ ବର୍ଣ୍ଣନା କରାଯାଉଛି । ଏବେ ଦେଖାଯାଉଛି ଯେ ବର୍ଷାଦିନେ ବର୍ଷା ଠିକ୍ ଭାବରେ ହେଉ ନାହିଁ । ଅଥବା ଅତିବୃଷ୍ଟି ହେଉଛି । ଫଳରେ ବର୍ଷା ଅଭାବରୁ କେବେ ଫସଲହାନି ଘଟି ମରୁଡ଼ି ହେଉଛି ତ କେବେ ଅତିବୃଷ୍ଟି ହେବା ଫଳରେ ବନ୍ୟାର



ବିଭୀଷିକା ସୃଷ୍ଟି ହେଉଛି । ବନ୍ୟା ହେବା ଫଳରେ ଦେଶର ଧନଜୀବନ ବ୍ୟାପକ ଭାବରେ ନଷ୍ଟ ହେଉଛି ।

ଗ୍ରୀଷ୍ମ ଋତୁରେ ପ୍ରଚଣ୍ଡ ଗ୍ରୀଷ୍ମ ଫଳରେ ଅନେକ ଲୋକ ମୃତ୍ୟୁ ମୁଖରେ ପଡ଼ୁଛନ୍ତି ଓ ଜୀବନଯାତ୍ରା ଅଚଳ ହୋଇ-ପଡ଼ୁଛି ।

ଶୀତଦିନେ ଶୀତ ହେଉ ନାହିଁ । ଶରତ ଆଉ ହେମନ୍ତ, ଏ ଦୁଇଟି ଋତୁକୁ ଆମେ ଆଉ ଉପଭୋଗ କରିପାରୁ ନାହୁଁ । ଏ ଦୁଇଟି ଋତୁ କେତେବେଳେ ଆସି କେତେବେଳେ ଚାଲି

ଯାଉଛନ୍ତି, ତାହା ଜଣାପଡ଼ୁ ନାହିଁ । ଋତୁଚକ୍ର ପାଞ୍ଜିରୁ ଏ ଦୁଇଟି ଋତୁ ଅପସରି ଗଲାପରି ଜଣାପଡ଼ୁଛି । ବସନ୍ତର ମୃଦୁ ମଳୟ କେବଳ ବେଳେ ବେଳେ ଅନୁଭୂତ ହେଉଛି । ଋତୁରାଜ ବସନ୍ତର ଆଗମନ ଓ ରାଜତ୍ୱକୁ ଆମେ ମଧ୍ୟ ଉପଭୋଗ କରିପାରୁ ନାହୁଁ । ପ୍ରାକୃତିକ ପରିବେଶ ନଷ୍ଟ ହୋଇଥିବାର ଆମେ ସ୍ପଷ୍ଟ ସୂଚନା ପାଉଛୁ । ପୁଣି ବେଳେ ବେଳେ ଅଭୂତପୂର୍ବ ବାତ୍ୟା ଓ ଘୂର୍ଣ୍ଣି ସୃଷ୍ଟି ହୋଇ ଧନଜୀବନ ବ୍ୟାପକ ଭାବରେ ନଷ୍ଟ କରୁଛି ।

ବୋଧହୁଏ ଏପରି ସମୟ ଆସିବ, ଯେତେବେଳେ ସମୁଦାୟ ୬ଟି ଯାକ ଋତୁକୁ ଆମେ ଗୋଟିଏ ଦିନରେ ଅନୁଭବ କରିପାରିବୁ । ଦିନ ଆଉ ବେଶି ନାହିଁ ଯେତେବେଳେ ପ୍ରଚଣ୍ଡ ରୌଦ୍ରତାପରେ ମଣିଷ ଜୀବନ ସଙ୍କଟାପନ୍ନ ହେବ ଓ ଏ ସାରା ପୃଥିବୀ ଗୋଟିଏ ମରୁଭୂମିରେ ପରିଣତ ହେବ । ପୃଥିବୀ ମଣିଷ ପାଇଁ ଆଉ ବାସପୋଯୋଗୀ ହୋଇ ରହି ନାହିଁ । ମଣିଷ ଜାତି ଏ ଧରାପୃଷ୍ଠରୁ ଲୋପ ପାଇଯିବ ।

ତେଣୁ ଆମର ଭବିଷ୍ୟତ ଲାଗି ଆମେ ସଚେତନ ହେବା ଦରକାର । ପରିବେଶର ସୁରକ୍ଷା ଲାଗି ଆମେ ଉଦ୍ୟମ କରିବା ଆବଶ୍ୟକ । ତେବେ ଯାଇ ଆମ ପରିବେଶକୁ ଆମେ ସୁରକ୍ଷା କରିପାରିବା ଓ ପ୍ରଦୂଷଣରୁ ମୁକ୍ତ କରିପାରିବା । ଏକ ସୁସ୍ଥ ପ୍ରାକୃତିକ ପରିବେଶ ସୃଷ୍ଟି କରିପାରିବା ।

# ପରିବେଶ ଦୂଷିତ ହୁଏ କାହିଁକି ?

ମଣିଷ ପ୍ରକୃତି କୋଳରେ ବାସ କରେ । ମଣିଷ ସଭ୍ୟତାର ଆରମ୍ଭ ଦିନରୁ ମଣିଷ ବଣଜଙ୍ଗଲରେ ରହୁଥିଲା । ପର୍ବତ ଗୁମ୍ଫାରେ ବସବାସ କରୁଥିଲା । ପ୍ରକୃତି ଉପରେ ନିର୍ଭର କରି ଚଳୁଥିଲା । ଖାଦ୍ୟ, ପାନୀୟ, ବାସଗୃହ ଓ ଅନ୍ୟାନ୍ୟ ଉପକରଣ ପାଇଁ ପ୍ରକୃତି ଏକମାତ୍ର ଉତ୍ସ ଥିଲା । ମଣିଷ ପ୍ରକୃତିର ନିୟମ ସହିତ ସଦାବେଳେ ଖାପଖୁଆଇ ଚଳେ । ପ୍ରକୃତିର ନିଜର ନିୟମ ଅଛି । ଯେପରି ବର୍ଷାଦିନେ ନିଶ୍ଚିତ ବର୍ଷା ହେବ । ପ୍ରକୃତି ତା'ର ସେହି ନିଜସ୍ୱ ନିୟମ ବଳରେ ସମତା ରକ୍ଷା କରେ । ଭାରସାମ୍ୟ ରକ୍ଷାକରେ ।



ଜଙ୍ଗଲରେ ଯଦି ବେଶି ସଂଖ୍ୟାରେ ହରିଣ ବଢ଼ି ଯାଆନ୍ତି, ତା'ହେଲେ ତୃଣଭୂମିର ସବୁ ଖାଦ୍ୟ ସରିଯାଆନ୍ତା । ହରିଣମାନେ ଖାଇବାକୁ ନପାଇ ବିନାଶ ଯାଆନ୍ତେ । ଅଥବା ଯଦି ବାଘ ସଂଖ୍ୟା ବଢ଼ିଯାଆନ୍ତା, ତେବେ ହରିଣକୁଳ ବାଘମାନଙ୍କ

ଦ୍ୱାରା ଲୋପ ପାଇଯାଆନ୍ତି । ବାଘମାନେ ହରିଣମାନଙ୍କୁ ଖାଇ ଯାଆନ୍ତେ । ଶେଷରେ ବାଘମାନେ ଖାଇବାକୁ ନ ପାଇ ମୃତ୍ୟୁ ମୁଖରେ ପଡ଼ନ୍ତେ । ବାଘକୁଳ ବିନାଶ ଯାଆନ୍ତା ।

କିନ୍ତୁ ଏପରି ଅଘଟଣ ପ୍ରକୃତି ରାଜ୍ୟରେ ଘଟେ ନାହିଁ । ସେଇ ବଣରେ ବାଘ ଅଛନ୍ତି ଓ ମିରିଗ ଅଛନ୍ତି । କେହି ବିନାଶ ଯାଇ ନାହାନ୍ତି । ସମତା ରକ୍ଷା ହୋଇଛି । ଭାରସାମ୍ୟ ରହିଛି । ହରିଣ ବଢ଼ିଗଲେ ବାଘମାନେ ଖାଇଯିବେ । ବାଘ ସଂଖ୍ୟା ବଢ଼ିଗଲେ, ଖାଦ୍ୟ ଅଭାବରୁ ସେମାନଙ୍କ ସଂଖ୍ୟା ମଧ୍ୟ କମିଯିବ । ଏଇଟା ହେଉଛି ପ୍ରକୃତିର ନିଜସ୍ୱ ନିୟମ । ପ୍ରକୃତିର ବୈଚିତ୍ର୍ୟ । ଏହି ନିୟମ ବଳରେ ପ୍ରକୃତି ରାଜ୍ୟରେ ସମତା ବା ଭାରସାମ୍ୟ ଅତୁଟ ଓ ଅକ୍ଷୁଣ୍ଣ ରହିଛି ।

ନଦୀଜଳ ବିଭିନ୍ନ କାରଣରୁ ଦୂଷିତ ହୁଏ । ତାହା ପୁଣି ସୂର୍ଯ୍ୟକିରଣ ଦ୍ୱାରା ଆପେ ଆପେ ବିଶୁଦ୍ଧ ହୋଇଯାଏ । ସୂର୍ଯ୍ୟକିରଣରେ ଏଭଳି ଶକ୍ତି ବା ପ୍ରଭାବ ଅଛି ଯାହା ନଦୀଜଳକୁ ପ୍ରଦୂଷଣ ମୁକ୍ତ କରିଦିଏ । ଏଇଟା ପ୍ରକୃତିର ନିୟମ । ସେହିପରି ବର୍ଷାଦିନର ଗୋଳିଆପାଣି ଓ ମଇଳା ନଦୀଜଳ ଶରତ ଋତୁ ବେଳକୁ ନିର୍ମଳ ହୋଇଯାଏ ।

ପ୍ରକୃତିର ଏଇ ସମତାକୁ ନଷ୍ଟ କରିବା ପାଇଁ ମଣିଷ ହିଁ ଏକମାତ୍ର ଦାୟୀ । ପ୍ରଦୂଷଣ ମାନବ ସୃଷ୍ଟ । ମଣିଷର ବିଚାରହୀନ କାର୍ଯ୍ୟ ପାଇଁ ଆଜିର ପରିବେଶ ଦୂଷିତ ଓ ବିଷମୟ ହୋଇ ଉଠିଛି । ମଣିଷ ନିଜର ସଂକୀର୍ଣ୍ଣ ସ୍ୱାର୍ଥସାଧନ ପାଇଁ ପରିବେଶକୁ

ଧ୍ୱଂସ କରୁଛି ଏବଂ ଧ୍ୱଂସ କରିଚାଲିଛି । ନିର୍ବିଚାରରେ ସେ ପ୍ରକୃତିର ଉପରେ ନାନା ପ୍ରକାରରେ ଅତ୍ୟାଚାର କରିଚାଲିଛି ଓ



ସ୍ଥଳ ବିଶେଷରେ ପ୍ରାକୃତିକ ନିୟମ ଲଙ୍ଘନ କରିଛି । ଫଳରେ ପ୍ରାକୃତିକ ପରିବେଶ ନଷ୍ଟ ହେଉଛି । ଏହାଦ୍ୱାରା ମଣିଷ ନିଜେ ନିଜର ଭବିଷ୍ୟତକୁ ହତ୍ୟା କରୁଛି । ପ୍ରକୃତିର ଏହି ସମତାକୁ ଦୋହଲାଇ ଦେବା ଫଳରେ ପରିବେଶ ପ୍ରଦୂଷଣ ଜନ୍ମଲାଭ କରିଛି ।

ଏହି ପ୍ରଦୂଷଣ ଆଜ ବିଶ୍ୱବ୍ୟାପୀ । ସାରା ପୃଥିବୀର ପରିବେଶ ଆଜ ଦୂଷିତ ଓ ବିପନ୍ନ । ପ୍ରଦୂଷଣରୁ ମୁକ୍ତି ଓ ପରିବେଶର ସୁରକ୍ଷା ନିମିତ୍ତ ଆନ୍ତର୍ଜାତିକ ବୈଠକ ଓ ଆଲୋଚନା-ଚକ୍ରମାନ ଅନୁଷ୍ଠିତ ହେଉଛି । ଏହି ପ୍ରଦୂଷଣ ସାଧାରଣତଃ ଜଳ, ସ୍ଥଳ, ବାୟୁ ଓ ନଭମଣ୍ଡଳରେ ସଂଘଟିତ ଓ ବ୍ୟାପ୍ତ ହେଉଛି ।

ଜଳଭାଗ—

ପୃଥିବୀର ଜଳରାଶି ଦୂଷିତ ହେବାରେ ଲାଗିଛି । ସାଗର ଓ ମହାସାଗରରେ ବିଶ୍ୱର ବୃହତ୍ ଶକ୍ତିମାନେ ପରୀକ୍ଷା କରିବା ନାମରେ ମାରାତ୍ମକ ନିଉକ୍ଲିଅର ବୋମା ସବୁ ବିସ୍ଫୋରଣ କରୁଥିବାରୁ ସମୁଦ୍ର ଜଳ ଦୂଷିତ ହେଉଛି । ଅନେକ ସାମୁଦ୍ରିକ



ଜୀବ ଓ ମାଛ ଏହି ବିସ୍ଫୋରଣ ଯୋଗୁଁ ମୃତ୍ୟୁ ମୁଖରେ ପଡ଼ୁଛନ୍ତି । ଶିଳ୍ପ ଓ କାରଖାନାର ମାଲିକମାନେ ସେମାନଙ୍କ ବର୍ଜ୍ୟଗୁଡ଼ିକ ସମୁଦ୍ର ଓ ନଦୀ ଜଳରେ ନିଷ୍କାସନ କରୁଥିବାରୁ ନଦୀଜଳ ଦୂଷିତ ହେବାରେ ଲାଗିଛି । ଏହାଛଡ଼ା ନଦୀଜଳରେ ବହୁସଂଖ୍ୟକ ଲୋକ ସେମାନଙ୍କ ସ୍ନାନାଦିକର୍ମ ଓ ଲୁଗାପଟା ସଫା କରୁଥିବାରୁ ନଦୀଜଳ ଦୂଷିତ ହେଉଛି । ଶବଗୁଡ଼ିକ ନଦୀରେ ଭସାଇ ଦିଆଯାଉଥିବାରୁ ନଦୀଜଳ ମଧ୍ୟ ଦୂଷିତ ହେଉଛି ।

ଯେଉଁ ନଦୀର ଜଳକୁ ଆମେ ପବିତ୍ର ବୋଲି ସ୍ୱୀକାର କରୁ ଏବଂ ତୀର୍ଥଜଳ ବୋଲି ସମ୍ମାନ ଦେଉ, ସେଇ ପାବନୀ

ଗଙ୍ଗା ଆଜ ପ୍ରଦୂଷଣର ଶୀର୍ଷ ଦେଶରେ ଉପନୀତା । ଶବ, ବିଷ୍ଠା ଓ ଶିଳ୍ପର ବର୍ଜ୍ୟରେ ଭରପୂର ହୋଇ ତାହା ବିଷାକ୍ତ ହେବାକୁ ବସିଲାଣି । ସରକାରଙ୍କ ପକ୍ଷରୁ ଗଙ୍ଗାକୁ ପ୍ରଦୂଷଣ ମୁକ୍ତ କରିବା ପାଇଁ ଯୋଜନା କାର୍ଯ୍ୟକାରୀ ହେଉଥିବା ଏକ ସୁସମ୍ବାଦ ଓ ଅଭିନନ୍ଦନୀୟ । ତା'ଛଡ଼ା ଆମର କୃଷକ ଭାଇମାନେ ଫସଲକୁ



କୀଟ ଓ ପୋକ ଦାଉରୁ ରକ୍ଷା କରିବା ପାଇଁ ଫସଲ କିଆରୀରେ ପୋକମରା ଔଷଧ ଓ କୀଟନାଶକ ରସାୟନ ପ୍ରୟୋଗ କରନ୍ତି । ଏହି ରସାୟନିକ ପଦ୍ଧତିରେ ତିଆରି ଔଷଧଗୁଡ଼ିକ ବିଷ । ଏହା ପୋକ ଓ କୀଟଙ୍କୁ ମାରି ଫସଲକୁ ରକ୍ଷା କରେ । ଏହି ବିଷଗୁଡ଼ିକ କିଆରୀ ପାଣିରେ ମିଶେ । କିଆରୀର ଏହି ବିଷାକ୍ତ ପାଣି ପରିଶେଷରେ ନଦୀ ଜଳରେ ମିଶି ନଦୀ ଜଳକୁ ବିଷାକ୍ତ ଓ ଦୂଷିତ କରେ ।

ସ୍ଥଳଭାଗ—

ସ୍ଥଳଭାଗରେ ଦୂଷିତୀକରଣ ବୋଧହୁଏ ସବୁଠାରୁ ବେଶି । ଅହରହ ଗାଡ଼ି ଘୋଡ଼ା ଯାତାୟତ କରୁଛି । ଏହି ଗାଡ଼ି ଘୋଡ଼ା ଓ

ଇଞ୍ଜିନ୍‌ଗୁଡ଼ିକୁ ଚଳୁ ରଖିବା ପାଇଁ ମୋବିଲ୍, ଡିଜେଲ୍, ପେଟ୍ରୋଲ ଓ କୋଇଲା ପୋଡ଼ା ଚାଲିଛି । ଏହା ଫଳରେ ଗାଡ଼ି ମଟରର ବିଷାକ୍ତ ଧୂଆଁ ସବୁ ବାୟୁମଣ୍ଡଳରେ ମିଶୁଛି । ଆମେ ସେହି ବାୟୁକୁ ପ୍ରଶ୍ୱାସରେ ଗ୍ରହଣ କରୁଛୁ । ତାହା ଆମର ଶରୀର ଭିତରକୁ ଯାଇ ଆମ ଶରୀରର ଯଥେଷ୍ଟ କ୍ଷତ କରୁଛି ।



ଗାଡ଼ିଘୋଡ଼ା ଓ ଇଞ୍ଜିନ୍ ପ୍ରଭୃତିରୁ ନିର୍ଗତ ହେଉଥିବା ବାଷ୍ପରେ କାର୍ବନ୍ ମନୋକ୍‌ସାଇଡ଼୍ ବିଷାକ୍ତ ଓ ଗ୍ୟାସ୍ ରହିଛି । ଅଙ୍ଗାରକାମ୍ଳଯାନ ମଧ୍ୟ ଏଥିରେ ମିଶିକରି ଅଛି । ଅଙ୍ଗାରକାମ୍ଳଯାନ ବାୟୁମଣ୍ଡଳରେ ଦିନକୁଦିନ ବଢ଼ିବାକୁ ଲାଗିଛି । ଫଳରେ ଆମେ ତାପମାତ୍ରାରେ ଅତ୍ୟଧିକ ଗ୍ରୀଷ୍ମ ଅନୁଭବ କରୁଛୁ । ସେହିପରି କାର୍ବନ୍ ମନୋକସାଇଡ଼୍ ଗ୍ୟାସ୍ ବାୟୁମଣ୍ଡଳରେ ମିଶି ଆମ ଶରୀର ଭିତରକୁ ଆସୁଥିବାରୁ ଏହା ରକ୍ତଚାପ ଓ ହୃଦ୍‌ରୋଗ ପରି ମାରାତ୍ମକ ରୋଗ ସୃଷ୍ଟି କରୁଛି ।

ମଣିଷ ବଞ୍ଚିବା ପାଇଁ ଅମ୍ଳଜାନ ଦରକାର କରେ । ଏହି ଗ୍ୟାସ୍ ବାୟୁମଣ୍ଡଳରେ ପ୍ରାୟ ଶତକଡ଼ା ୨୧ ଭାଗ ରହିଛି । ମଣିଷ ପ୍ରଶ୍ୱାସରେ ଅମ୍ଳଜାନ ଗ୍ରହଣ କରି ନିଶ୍ୱାସରେ ଅଙ୍ଗାରକାମ୍ଳ ତ୍ୟାଗ କରେ । ବୃକ୍ଷଲତାମାନେ ବାୟୁମଣ୍ଡଳରୁ ଅଙ୍ଗାରକାମ୍ଳ ଗ୍ରହଣ କରି ଅମ୍ଳଜାନ ଛାଡ଼ନ୍ତି । ଫଳରେ ବାୟୁମଣ୍ଡଳରେ ସମତା ରକ୍ଷା ହୁଏ । ଏହା ପ୍ରକୃତିର ଚିରନ୍ତନ ନିୟମ । କିନ୍ତୁ ମଣିଷ ବିଚାରଶୂନ୍ୟ ଭାବରେ ଜଙ୍ଗଲ କାଟି ସଫା କରି ଚାଲିଥିବାରୁ, ବୃକ୍ଷସବୁକୁ କାଟି ଜଙ୍ଗଲ ସମ୍ପଦ ଧ୍ୱଂସ କରି ଦେଉଥିବାରୁ ବାୟୁମଣ୍ଡଳ ଦୂଷିତ ହେବାରେ ଲାଗିଛି ।

ମଣିଷ ରୋଷେଇ କାର୍ଯ୍ୟ ଶିଖିବା ଦିନଠାରୁ ପରିବେଶ ଦୂଷିତ ହେବାରେ ଲାଗିଛି । କୋଇଲା, କାଠ, ଗୋବରଘସି,



କିରୋସିନି ଓ ଜାଳେଣି ସବୁ ବାୟୁମଣ୍ଡଳକୁ ଦୂଷିତ କରିବାରେ ଲାଗିଛି । ବଡ଼ ବଡ଼ କାରଖାନା ଓ ଶିଳ୍ପାଞ୍ଚଳର ଚିମିନୀଗୁଡ଼ିକ

ବାୟୁମଣ୍ଡଳକୁ ଦୂଷିତ କରିବାରେ ମୁଖ୍ୟ ଭୂମିକା ଗ୍ରହଣ କରିଛନ୍ତି । ଏହି ଚିମିନୀରୁ ଅହରହ ବାହାରୁଥିବା ଧୂଆଁ, ଗ୍ୟାସ୍ ଓ ଧୂଳିକଣା ବାୟୁମଣ୍ଡଳରେ ମିଶି ମୁକ୍ତବାୟୁକୁ ଦୂଷିତ କରୁଛି । ଏହି ବାୟୁ ସେବନ ଫଳରେ ହୃଦ୍‌ରୋଗ ଓ ରକ୍ତଚାପ ସୃଷ୍ଟି ହେଉଛି ବୋଲି ବୈଜ୍ଞାନିକମାନଙ୍କର ମତ ।

ନଭମଣ୍ଡଳ—

ଆକାଶ ବକ୍ଷରେ ଆଜିକାଲି ଉଚ୍ଚଶକ୍ତିସମ୍ପନ୍ନ ସ୍ୱୟଂଚାଳିତ ଜେଟ୍ ଓ ବିମାନ ଯାତାୟାତ କରୁଛି । ଏହି ଦ୍ରୁତଗାମୀ ବିମାନ ଓ



ଜେଟ୍‌ଗୁଡ଼ିକ ବାୟୁମଣ୍ଡଳର ଓଜନସ୍ତରଟିକୁ କ୍ରମାଗତ ଭାବେ ନଷ୍ଟ କରିବାରେ ଲାଗିଛନ୍ତି । ବାୟୁମଣ୍ଡଳର ଏହି ଓଜନ ସ୍ତରଟିର ଭୂମିକା ଅତୀବ ଗୁରୁତ୍ୱପୂର୍ଣ୍ଣ । ଏହି ସ୍ତରଟିର କାମ ହେଲା ପ୍ରଖର ସୂର୍ଯ୍ୟକିରଣକୁ ପୃଥିବୀ ପୃଷ୍ଠକୁ ଛାଡ଼ି ନ ଦେବା । ତାଛଡ଼ା ସୂର୍ଯ୍ୟ

ରଶ୍ମୀରେ ଥିବା 'ଗାମାର' ପ୍ରଭୃତି 'ଅଲଟ୍ରା ଭାଓଲେଟ୍‌ରେ' ବା ମାରାତ୍ମକ ରଶ୍ମୀଗୁଡ଼ିକୁ ଭୂପୃଷ୍ଠକୁ ଛାଡ଼ି ନ ଦେଇ ଶୋଷଣ କରିନେବା ଫଳରେ ସୂର୍ଯ୍ୟର ଖରାପ ପ୍ରଭାବ ପୃଥିବୀ ପୃଷ୍ଠରେ ପହଞ୍ଚିପାରେ ନାହିଁ; କିନ୍ତୁ ଓଜନ ସ୍ତର ଟି କମାଗତ ଭାବରେ ବିପର୍ଯ୍ୟସ୍ତ ଓ ନଷ୍ଟ ହୋଇ ଆସୁଥିବାରୁ ତା'ର ବିପଦପୂର୍ଣ୍ଣ ପ୍ରଭାବ ପୃଥିବୀ ଉପରେ ପଡ଼ୁଛି। ଫଳରେ ଚର୍ମ କ୍ୟାନ୍‌ସର ଶତକଡ଼ା ପାଞ୍ଚଭାଗ ପୃଥିବୀ ପୃଷ୍ଠରେ ବଢ଼ିଯିବ। ରୌଦ୍ରତାପ ପ୍ରଚଣ୍ଡ ଅନୁଭୂତ ହେବ। ବର୍ତ୍ତମାନ ମେରୁଅଞ୍ଚଳରେ ଓଜନସ୍ତର ସମ୍ବନ୍ଧୀୟ ସର୍ବଶେଷ ଗବେଷଣାରୁ ଜଣାପଡ଼ୁଛି ଯେ ଓଜନ ସ୍ତରରେ ଫାଟ ସୃଷ୍ଟି ହେଉଛି ଏବଂ ଏହି ଓଜନ ସ୍ତରରେ ଆଶୁ ପରିବର୍ତ୍ତନ ଘଟୁଛି। ଏହା ସମଗ୍ର ମାନବଜାତି ପ୍ରତି ବିପଦ।

ଅମ୍ଳବୃଷ୍ଟି—

ଅମ୍ଳବୃଷ୍ଟି ଆମ ଶିଳ୍ପସଭ୍ୟତାର ଏକ କୁପରିଣତି। ଅମ୍ଳ ବା ଏସିଡ୍ ଯେତେବେଳେ ବର୍ଷାଦହିତ ମିଶି ଯାଇଥାଏ ବା ବୃଷ୍ଟିପାତରେ ଅମ୍ଳବୃଷ୍ଟି ହୋଇଥାଏ, ତାହା ଉଭୟ ମଣିଷ ଓ ପରିବେଶ ପାଇଁ ବିପଜ୍ଜନକ ହୋଇପଡ଼େ। ଏହା ଅରଣ୍ୟ ସମ୍ପଦ ନଷ୍ଟକରେ। ପ୍ରାଣୀଜଗତକୁ ଧ୍ୱଂସମୁଖରେ ପକାଏ ଓ ମଣିଷ ଉପରେ ନାନାଦି କୁପ୍ରଭାବ ପକାଏ। ଏହି ଅମ୍ଳ ବୃଷ୍ଟି ଫଳରେ ଗଛଗୁଡ଼ିକ ଆସ୍ତେ ଆସ୍ତେ ହଳଦିଆ ପଡ଼ିଯାଇ ମୃତ୍ୟୁମୁଖରେ ପଡ଼ନ୍ତି। ପ୍ରାଣୀଜଗତ ମୃତ୍ୟୁବରଣ କରନ୍ତି। ଏହି

ଅମ୍ଳବୃଷ୍ଟିର କାରଣ ହେଲା ପେଟ୍ରୋଲିଅମ୍ ବିଶୋଧନାଗାର । ଅଶୋଧିତ ପେଟ୍ରୋଲିଅମକୁ ଶୋଧନ କରି ପେଟ୍ରୋଲ୍ ଓ ଡିଜେଲ



ଓ ବିଭିନ୍ନ ପେଟ୍ରୋଲିଅମ୍ ଜାତ ପଦାର୍ଥ ପାଇବା ପାଇଁ ପେଟ୍ରୋଲିଅମ ବିଶୋଧନାଗାର ଓ କାରଖାନା ବସାଯାଇଛି ।

ଏହି ପେଟ୍ରୋଲିଅମ୍ ବିଶୋଧନାଗାରରୁ ନିର୍ଗତ ହେଉଥିବା ବିଷାକ୍ତ ଗ୍ୟାସ୍ ସଲ୍‌ଫ୍ୟୁରିକ୍-ଡାଇ-ଅକ୍‌ସାଇଡ୍ ଓ ଗାଡ଼ିଘୋଡ଼ାରୁ ନିର୍ଗତ ହେଉଥିବା ବିଷାକ୍ତ ଗ୍ୟାସ୍ କାର୍ବନ୍ ମନକସାଇଡ୍ ମିଶି ସେଗୁଡ଼ିକର ରାସାୟନିକ ପ୍ରକ୍ରିୟାରେ ଅମ୍ଳବୃଷ୍ଟି ହୁଏ । କାଲିଫର୍ଣ୍ଣିଆରେ ଏକଦା ଏହି ଅମ୍ଳବୃଷ୍ଟି ଫଳରେ ଏକ ବିରାଟ ହ୍ରଦ ମାଛଶୂନ୍ୟ ହୋଇଗଲା । ହ୍ରଦର ସମସ୍ତ ମାଛ ମୃତ୍ୟୁ ମୁଖରେ ପଡ଼ିଲେ । ଏହି ଅମ୍ଳବୃଷ୍ଟି ଫଳରେ ଏଭଳି ମାରାତ୍ମକ ପ୍ରଭାବ ସୃଷ୍ଟି ହୁଏ ଯେ ମାଛମାନେ ଦେଉଥିବା ଅଣ୍ଡା ଫୁଟେ ନାହିଁ ବା ସେଥିରୁ ମାଛ ଯାଆଁଳ ବାହାରେ ନାହିଁ ।

ଦ୍ୱିତୀୟତଃ ପେଟ୍ରୋଲିଅମ୍ ବିଶୋଧନାଗାରରୁ ନିର୍ଗତ ବିଷାକ୍ତ ଗ୍ୟାସ୍ କାରୁକାର୍ଯ୍ୟ ଖଚିତ କଳା ଓ ସ୍ଥାପତ୍ୟକୁ ନଷ୍ଟ କରିଦିଏ । ସଦ୍ୟତମ ଗବେଷଣାରୁ ଜଣାଯାଇଛି ଯେ ମଥୁରାରେ ସ୍ଥାପିତ ଏହି ବିଶୋଧନାଗାର କାରଖାନା 'ତାଜମହଲ' ପାଇଁ ବିପଦ ସୃଷ୍ଟି କରିଛି । ତାଜମହଲରେ କ୍ଷୟ ଓ ଫାଟ ସୃଷ୍ଟି କରିବା ଲାଗି ଏଇ ଗ୍ୟାସ୍ ଦାୟୀ ।

ଶବ୍ଦ ପ୍ରଦୂଷଣ—

ଆମ୍ଭେମାନେ ଏକ ଯନ୍ତ୍ର ସଭ୍ୟତାରେ ବଞ୍ଚୁଛୁ । ଯନ୍ତ୍ରଜନିତ ଶବ୍ଦ ଓ କୋଳାହଳରେ ଆମେ ଅଭ୍ୟସ୍ତ ହୋଇପଡ଼ିଛୁ ।



ଚାରିଆଡ଼େ ଏବଂ ସଦାବେଳେ ଶବ୍ଦର ପ୍ରବାହ । ବଜାର ଘାଟଠାରୁ ଆରମ୍ଭ କରି ବଗିଚାଘର ପର୍ଯ୍ୟନ୍ତ ଚାରିଆଡ଼େ ଖାଲି ଶବ୍ଦ

ଆଉ ଶବ୍ଦ । ରିକ୍ସାର ଠଣ୍ ଠଣ୍ ଶବ୍ଦ ବା ମେସିନର ଘର୍ ଘର୍ ଶବ୍ଦଠାରୁ ଆରମ୍ଭ କରି ବିଭିନ୍ନ ଗାଡ଼ିଘୋଡ଼ା ଓ ମହାକାଶରେ ଯାଉଥିବା ବିଭିନ୍ନ ବିମାନ ଓ ରକେଟ୍ ଶବ୍ଦର ପ୍ରଭାବ ମଣିଷ ଉପରେ ପଡ଼ୁଛି ।

ଏହି ଶବ୍ଦ ପ୍ରଦୂଷଣ ଫଳରେ ମଣିଷ କ୍ରମେ କ୍ରମେ ବଧିରତା ଆଡ଼କୁ ଗତି କରୁଛି । ତା'ଛଡ଼ା ବର୍ତ୍ତମାନ ବିଜ୍ଞାନୀମାନେ ମତପ୍ରଦାନ କରୁଛନ୍ତି ଯେ ଏହି ଶବ୍ଦ ତରଙ୍ଗ ମଣିଷ ଉପରେ ମନସ୍ତାତ୍ତ୍ୱିକ ପ୍ରଭାବ ପକାଉଛି । ଏହି ଶବ୍ଦପ୍ରଦୂଷଣ ମଣିଷର ମନ ଓ ମସ୍ତିଷ୍କ ଉପରେ କ୍ରମାଗତ ଭାବରେ ଯେଉଁ ପ୍ରଭାବ ପକାଉଛି ତାହା ମଣିଷ ପାଇଁ ହାନିକାରକ ।

ପ୍ରଦୂଷଣ ବର୍ତ୍ତମାନ ଯେଉଁ ହାରରେ ବଢ଼ିଚାଲିଛି ବା ଯେଉଁ ସ୍ତରରେ ଆସି ପହଞ୍ଚିଲାଣି ତା'ର ଦୃଢ଼ ପ୍ରତିକାର ଓ ପ୍ରତିରୋଧ ଆବଶ୍ୟକ । ସଦ୍ୟତମ ତଥ୍ୟରୁ ପ୍ରକାଶ ଯେ ପୃଥିବୀରେ ତାପ-ମାତ୍ରାର ପରିବର୍ତ୍ତନ ଘଟିଛି । ତାପମାତ୍ରା କ୍ରମେ ବଢ଼ି ବଢ଼ି ଯାଉଛି । କାରଣ ବାୟୁମଣ୍ଡଳରେ ଦିନକୁ ଦିନ ଅଙ୍ଗାରକାମ୍ଳ ଗ୍ୟାସ୍‌ର ପରିମାଣ ବଢ଼ିଚାଲିଛି ।

ଏହା ଯଦି ଏପରି ଗତିରେ ଚାଲେ ତେବେ ପୃଥିବୀର ତାପମାତ୍ରା ବଢ଼ିଗଲେ, ଉଚ୍ଚ ତାପମାତ୍ରା ଦ୍ୱାରା ମେରୁରେ ଥିବା ବରଫ ପାହାଡ଼ ଓ ଗ୍ଲେସିଅରଗୁଡ଼ିକ ତରଳିବାକୁ ଆରମ୍ଭ

କରିବ ଓ ତରଳଯାଇ ବହିଆସିବ । ଫଳରେ ସମୁଦ୍ରର ଜଳ ପତନ ହଠାତ୍ ବୃଦ୍ଧି ପାଇବ ଓ 'ପ୍ରଳୟପୟୋଧି' ଜଳରେ ଏ



ସାରା ସଂସାର ଧ୍ୱଂସ ପାଇବ । ହଜାର ହଜାର ବର୍ଷର ମଣିଷ ସଭ୍ୟତା ଓ ମଣିଷ ଜାତିର ତପସ୍ୟା ନଶ୍ଚିହ୍ନ ହୋଇଯିବ । ସୁତରାଂ ସମଗ୍ର ମାନବଜାତି ଆଜ ଏ ବିଷୟରେ ସଚେତନ ଓ ସଜାଗ ହେବା ବିଧେୟ । ଏ ଦିଗରେ ଆମେମାନେ ସତର୍କତା ଅବଲମ୍ବନ କରିବା ଉଚିତ । କିଭଳି ଭାବରେ ଆମେ ଆମ ପରିବେଶର ସୁରକ୍ଷା କରିପାରିବା ଓ ସୁସ୍ଥ, ସୁନ୍ଦର ପରିବେଶ ସୃଷ୍ଟି କରିପାରିବା, ସେ ବିଷୟରେ ଆମେ ଉଦ୍ୟମ କରିବା ଏକାନ୍ତ ଜରୁରୀ । ସେଥିପାଇଁ କି କି କାର୍ଯ୍ୟ ଆମକୁ କରିବାକୁ ହେବ ତାହା ନିମ୍ନରେ ଆଲୋଚନା କରାଗଲା ।

ପରିବେଶର ସୁରକ୍ଷା—

ପ୍ରଦୂଷଣରୁ ପରିବେଶକୁ ମୁକ୍ତ କରି ପାରିଲେ ଯାଇ ପରିବେଶର ସୁରକ୍ଷା ହୋଇପାରିବ । ପରିବେଶର ସୁରକ୍ଷା ପାଇଁ ପ୍ରଦୂଷଣର ପ୍ରତିରୋଧ ଓ ପ୍ରତିକାର ଆବଶ୍ୟକ । ପ୍ରଦୂଷଣର ଭୟାବହତାକୁ ଏଡ଼ାଇବାକୁ ହେଲେ ପ୍ରଥମେ ଏହାକୁ ପୂର୍ଣ୍ଣମାତ୍ରାରେ ନିୟନ୍ତ୍ରଣ କରିବାକୁ ହେବ ଓ ସେଥିପାଇଁ ଆବଶ୍ୟକୀୟ ଆଇନ ପ୍ରଣୟନ କରି ତାହାକୁ କାର୍ଯ୍ୟକାରୀ କରିବାକୁ ହେବ । ପ୍ରଦୂଷଣର ନିରାକରଣ ଓ ସୁସ୍ଥ ପରିବେଶ ପାଇଁ କେତୋଟି ପନ୍ଥା ଅତୀବ ଗୁରୁତ୍ୱପୂର୍ଣ୍ଣ ।

—※—

## ବୃକ୍ଷରୋପଣ ବା ଜଙ୍ଗଲ୍ ସୃଷ୍ଟି

ଜନସଂଖ୍ୟା ଦ୍ରୁତଗତିରେ ବଢ଼ୁଥିବାରୁ ଅଧିକ ଚାଷଜମି ସୃଷ୍ଟି କରିବା ପାଇଁ ମଣିଷ ଜଙ୍ଗଲ ସମ୍ପଦ ଧ୍ୱଂସ କରୁଛି । ବାସଗୃହ ନିର୍ମାଣ ପାଇଁ ଓ ନିତ୍ୟବ୍ୟବହାର୍ଯ୍ୟ ଆସବାବପତ୍ର ଓ ଜାଳେଣି ପାଇଁ ମଣିଷ ଅମୂଲ୍ୟ ବଣ୍ୟ ସମ୍ପଦକୁ କାଟିବାରେ ଲାଗିଛି । ଜଙ୍ଗଲ ଧ୍ୱଂସ ଅଭିଯାନ ଅନବରତ ଲାଗି ରହିଛି । ଅପରପକ୍ଷରେ ଏହି ପ୍ରାକୃତିକ ସମ୍ପଦର ସୁରକ୍ଷା ଓ ବୃଦ୍ଧି ପାଇଁ କୌଣସି ଉଦ୍ୟମ ମଣିଷ କରୁନାହିଁ ।

ନିଜର ସଂକୀର୍ଣ୍ଣ ସ୍ୱାର୍ଥ ପାଇଁ ସେ ବଣଜଙ୍ଗଲକୁ ଧ୍ୱଂସ କରିବାରେ ଲାଗିଛି ଏବଂ ଏତେ ବୃକ୍ଷ କାଟିଦେବା ପରେ ସେ ଗୋଟିଏ ମାତ୍ର ବୃକ୍ଷ ମଧ୍ୟ ରୋପଣ କରୁନାହିଁ । ପୂର୍ବରୁ କୁରା-

ଯାଇଛୁ ଯେ ମଣିଷ ତା'ର ଜୀବନ ରକ୍ଷାକାରୀ ଅମ୍ଳଜାନ ବାୟୁ ମଣ୍ଡଳରୁ ଗ୍ରହଣ କରି ଅଙ୍ଗାରକାମ୍ଳ ଗ୍ୟାସ ବାୟୁମଣ୍ଡଳକୁ ଛାଡ଼େ । ବୃକ୍ଷଲତା ଏହି ଅଙ୍ଗାରକାମ୍ଳ ଗ୍ୟାସ ବାୟୁମଣ୍ଡଳରୁ ଗ୍ରହଣ କରି ଅମ୍ଳଜାନ ବାୟୁମଣ୍ଡଳକୁ ଛାଡ଼ୁଥିବାରୁ ବାୟୁମଣ୍ଡଳରେ ଅମ୍ଳଜାନର ଅନୁପାତ ଠିକ୍ ରହେ । ଆମେ ଯଦି ନିର୍ବିଚାରରେ



ବୃକ୍ଷଲତାଗୁଡ଼ିକୁ କାଟି ପକାଉ, ତେବେ ବାୟୁମଣ୍ଡଳରେ ଅମ୍ଳଜାନର ଭାଗ କମିବାକୁ ଲାଗିବ ଓ ଅଙ୍ଗାରକାମ୍ଳ ଗ୍ୟାସ ବଢ଼ିଯିବା ଫଳରେ ତାପମାତ୍ରା ବଢ଼ିଯିବ ।

ଜଙ୍ଗଲରୁ ଆମେ ଜାଳେଣିକାଠ, ଔଷଧ, ଫଳ ମୂଳ, ଫୁଲ, ମହୁ, ଶିଙ୍ଗ, ଖାଦ୍ୟଦ୍ରବ୍ୟ, ବାଉଁଶ, ଗୃହୋପକରଣ ବା ଆସବାବପତ୍ର ପାଇଁ କାଠ, ବସ୍ତ୍ର, ଚମଡ଼ା, ଲାଖ ଓ ମାଂସ ପ୍ରଭୃତି ଦ୍ରବ୍ୟ ପାଉ । ଜଙ୍ଗଲ ଉତ୍ତମ ଅନୁପାତରେ ରହିଲେ ସୁବୃଷ୍ଟି ହୁଏ । ତା'ଛଡ଼ା ଉପକୂଳବର୍ତ୍ତୀ ଅଞ୍ଚଳର ଘଞ୍ଚ ଅରଣ୍ୟ ବାତ୍ୟାର ପ୍ରତିରୋଧ କରେ । ଅରଣ୍ୟର ବିନାଶରେ ଆଜ ବାତ୍ୟା ଓ ଘୂର୍ଣ୍ଣି ଉଗ୍ରରୂପ




ଧାରଣ କରି ବ୍ୟାପକ ଧନ ଜୀବନ ଧ୍ୱଂସ କରିବାରେ ଲାଗିଛି । ନଦୀ ଉପକୂଳର ଅରଣ୍ୟ ବୃକ୍ଷର ଚେର ଦ୍ୱାରା ମୃତ୍ତିକାକୁ ଜାବୁଡ଼ି ଧରି ରଖେ । ଫଳରେ ନଦୀ ଅତଡ଼ା ଖାଇପାରେ ନାହିଁ । ବନ୍ୟା ଏହା ଫଳରେ ନିୟନ୍ତ୍ରଣ ହୋଇପାରେ । ନଦୀକୂଳ ଖାଇପାରେ ନାହିଁ ଅଥବା ଘାଇ ସୃଷ୍ଟି କରିପାରେ ନାହିଁ । ଜଙ୍ଗଲ କ୍ଷୟ ହେବା

ଦ୍ୱାରା ଅନ୍ୟ ଏକ ନୂତନ ସମସ୍ୟା ଜନ୍ମ ନେଉଛି । ବହୁ ପରି-ମାଣରେ ଉର୍ବର ମୃତ୍ତିକା ବର୍ଷାଦ୍ୱାରା କ୍ଷୟ ହେବାରେ ଲାଗିଛି । ଉର୍ବର ମୃତ୍ତିକା କ୍ଷୟକୁ ରୋକିବା ପାଇଁ ଏହାର ସଂରକ୍ଷଣ ପାଇଁ ସରକାରଙ୍କ ତରଫରୁ ବିଭିନ୍ନ ଯୋଜନା ମାଧ୍ୟମରେ ଉଦ୍ୟମ ଚାଲିଛି ।

ଜଙ୍ଗଲ କଟାଯିବା ଫଳରେ ବର୍ଷାଦ୍ୱାରା ସେହି ଉର୍ବର ମୃତ୍ତିକା ଧୋଇହୋଇ ବର୍ଷାଜଳର ସ୍ରୋତରେ ମିଶି ଭାସିଆସେ । ବହୁପରିମାଣର ଏହି ମୃତ୍ତିକା ବର୍ଷାଜଳ ସୁଅରେ ଆସି ନଦୀର ଶଯ୍ୟାକୁ ଆସ୍ତେ ଆସ୍ତେ ପୋତିପକାଏ । ଫଳରେ ନଦୀ ଶଯ୍ୟା କ୍ରମେ କ୍ରମେ ବଢ଼ିବାରେ ଲାଗିଛି ଓ ବନ୍ୟାର ବିଭୀଷିକା ଧନ ଓ ଜୀବନକୁ ବିପଦପୂର୍ଣ୍ଣ କରୁଛି । ଆମେ କେବଳ ନଦୀବନ୍ଧକୁ ଉଚ୍ଚ କରିବାରେ ଲାଗିଛୁ । ଏଣେ ନଦୀ ଶଯ୍ୟା ପ୍ରତିବର୍ଷ ପୋତି ହୋଇ-ପଡ଼ୁଥିବାରୁ ବନ୍ୟାଜଳର ସ୍ତର ବଢ଼ିବାରେ ଲାଗିଛି ।

ନଦୀବନ୍ଧକୁ ଉଚ୍ଚ କଲେ ମଧ୍ୟ କୌଣସି ସୁଫଳ ମିଳୁନାହିଁ । ଜଙ୍ଗଲ କାଟିଦେବା ଫଳରେ ଏହି ସମସ୍ୟା ଆଜି ସୃଷ୍ଟି ହୋଇଛି ।

ବୃକ୍ଷ, ମଣିଷର ମିତ୍ର, ହିତୈଷୀ ଏବଂ ରକ୍ଷାକବଚ । ସୃଷ୍ଟିର ପ୍ରଥମରୁ ଅରଣ୍ୟ ମଧ୍ୟରୁ ବେଦର ସୃଷ୍ଟି । ଋଷିମାନଙ୍କର ତପସ୍ୟା ଓ ଜ୍ଞାନଲାଭ ଏଇ ଅରଣ୍ୟ ଭିତରୁ । ରାମଚନ୍ଦ୍ରଙ୍କର ବନବାସ ଓ ସୃଷ୍ଟିର ମଙ୍ଗଳ ନିମନ୍ତେ ରାବଣବଧ ଏହି ଅରଣ୍ୟର ଦାନ । ପାଣ୍ଡବ

ମାନଙ୍କର ବନବାସ ଓ କୁରୁବଳ ନିଧନ ଏହି ଜଙ୍ଗଲର ଇତିହାସ। ଅରଣ୍ୟ ମଧ୍ୟରେ ହିଁ ସିଦ୍ଧାର୍ଥ ବୁଦ୍ଧଦେବଙ୍କର ଜ୍ଞାନଲାଭ ଓ ବୁଦ୍ଧତ୍ୱ



ପ୍ରାପ୍ତି ସମ୍ଭବ ହୋଇପାରିଥିଲା। ବିଷ୍ଣୁ ସହସ୍ର ନାମରେ ବିଷ୍ଣୁଙ୍କର ଅନ୍ୟ ନାମ ଅଶ୍ୱତ୍ଥ ବା ବୃକ୍ଷ।

ଏହାବ୍ୟତୀତ ବୃକ୍ଷ ତା'ର ଚେର ମାଧ୍ୟମରେ ଜଳଶୋଷଣ କରି ପରିବେଶକୁ ଶୀତଳ ଓ ସ୍ନିଗ୍ଧ ରଖେ। ସୁଶୀତଳ ଛାୟାଦାନ କରେ। ସୁମିଷ୍ଟ ଫଳ ଖାଦ୍ୟ ପାଇଁ ଯୋଗାଏ। ବୃକ୍ଷର ପ୍ରତ୍ୟେକ ଅଂଶ ଆମର କାମରେ ଲାଗେ। ଗଛର ଚେର ଔଷଧ ରୂପେ ବ୍ୟବହାର କରାଯାଏ। ଏପରିକି ବକ୍‌କଲ, ପତ୍ର, ଫୁଲ, ଫଳ ମଧ୍ୟ ଆମର ଦରକାରୀ ବିଭିନ୍ନ କାମ ଓ ଔଷଧ ପାଇଁ। ଗଛର ଡାଳ ଓ କାଠକୁ ଆମେ ଜାଳେଣି ଓ

ଗୃହୋପକରଣ ପାଇଁ ବ୍ୟବହାର କରୁ । ବୃକ୍ଷ ମଣିଷର ମିତ୍ର ଏବଂ ସବୁଠାରୁ ବେଶି ଉପଯୋଗୀ ।

ସାମାଜିକ ବନୀକରଣ—

ବୃକ୍ଷଲତା ଓ ବଣଜଙ୍ଗଲ ସହିତ ମଣିଷ କିପରି ଅଙ୍ଗାଙ୍ଗୀ ଭାବରେ ଜଡ଼ିତ ତାହା ବେଶ୍ ସ୍ପଷ୍ଟ । ସୁତରାଂ ଏହି ଜଙ୍ଗଲ ସମ୍ପଦର ସୁରକ୍ଷା ଓ ଅଭିବୃଦ୍ଧି ପାଇଁ 'ମଣିଷ ପାଇଁ ଗଛଟିଏ'



ଆହ୍ୱାନ ସରକାରଙ୍କ ତରଫରୁ ଦିଆଯାଇଛି । ବୃକ୍ଷ ରୋପଣ ଏକ ପରମାର୍ଥିକ କାର୍ଯ୍ୟ । ପୁରାଣଶାସ୍ତ୍ରରେ ବୃକ୍ଷ ରୋପଣକୁ ପୁଣ୍ୟ କାର୍ଯ୍ୟ ଭାବରେ ବର୍ଣ୍ଣନା କରାଯାଇଛି । ସେଇଥିପାଇଁ ଆଜି ସମଗ୍ର ମଣିଷ ସମାଜ ଏଥିପାଇଁ ଉଦ୍ୟମ କରିବା ଆବଶ୍ୟକ । ବଣଜଙ୍ଗଲ ବ୍ୟତୀତ ଆମେ ବଞ୍ଚିରହି ପାରିବା ନାହିଁ । ସୁତରାଂ ଆମକୁ

ଜଙ୍ଗଲ ସୃଷ୍ଟି କରିବାକୁ ହେବ ଓ ବୃକ୍ଷରୋପଣ କରିବାକୁ ହେବ । ତେବେ ଯାଇ ଆମେ ଆମର ପରିବେଶର ସୁରକ୍ଷା କରିପାରିବା ।



ସେଇଥିପାଇଁ ସରକାରଙ୍କର ସାମାଜିକ ବନୀକରଣ ଯୋଜନା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଏହାର ଉଦ୍ଦେଶ୍ୟ ହେଉଛି ନୂତନ ଜଙ୍ଗଲ ସୃଷ୍ଟି, ବୃକ୍ଷରୋପଣ, କ୍ଷୟ ପାଉଥିବା ଜଙ୍ଗଲର ପୁନରୁଦ୍ଧାର, ପଥପ୍ରାନ୍ତ ବନୀକରଣ ବା ରାସ୍ତା ଦୁଇ ପାର୍ଶ୍ୱରେ ବୃକ୍ଷରୋପଣ ଓ ପତିତ ଜମିର ଉଦ୍ଧାର ।

ପତିତ ଜମିରେ ଜଙ୍ଗଲ ସୃଷ୍ଟି ଏ ଯୋଜନାର ପରିସର ମଧ୍ୟରେ ଅନ୍ତର୍ଗତ । ଏହି ଯୋଜନା ଅନୁଯାୟୀ ବିଭିନ୍ନ ସ୍କିମ୍ ମାଧ୍ୟମରେ ସାଧାରଣ ଲୋକମାନଙ୍କୁ ଜଙ୍ଗଲ ସୃଷ୍ଟି ପାଇଁ ଉତ୍ସାହିତ କରାଯାଉଛି ଓ ଅର୍ଥନୈତିକ ସାହାଯ୍ୟ ମଧ୍ୟ ପ୍ରଦାନ

କରାଯାଉଛି । ଜଙ୍ଗଲ ଯେପରି ଭାବରେ କ୍ଷୟ ହେବାରେ ଲାଗିଛି ଏବଂ ଗଛକଟା ଚାଲିଛି, ତାକୁ ରୋକିବା ନୂତନ ଜଙ୍ଗଲ ଆମ ପାଇଁ ଓ ଭବିଷ୍ୟତ ବଂଶଧରଙ୍କ ପାଇଁ ସୃଷ୍ଟି କରିବା ଏହାର ଲକ୍ଷ୍ୟ ।

ଫଳରେ ପରିବେଶ ପ୍ରଦୂଷଣ ମୁକ୍ତ ହୋଇପାରିବ ଓ ପରିବେଶ ସୃଷ୍ଟି ହୋଇପାରିବ । ପରିବେଶକୁ ପ୍ରଦୂଷଣରୁ ରକ୍ଷା କରିବା ପାଇଁ ବୃକ୍ଷରୋପଣ ଏକ ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟପନ୍ଥା । ଏହା ଏକ ମହତ୍ତକାର୍ଯ୍ୟ ।



# ପରିବେଶ ସୁରକ୍ଷା ଆଇନ୍

ପରିବେଶର ସୁରକ୍ଷା ସମ୍ପର୍କରେ ସର୍ବପ୍ରଥମେ ୧୯୭୨ ମସିହାରେ ଷ୍ଟକ୍‌ହୋମ୍‌ଠାରେ ଅନୁଷ୍ଠିତ ହୋଇଥିବା ମିଳିତ ଜାତିସଂଘର ଅଧିବେଶନରେ ଆଲୋଚିତ ହୋଇଥିଲା । ପରିବେଶର ସୁରକ୍ଷା ପାଇଁ ଏହି ଅଧିବେଶନରେ କେତେକ



ଗୁରୁତ୍ୱପୂର୍ଣ୍ଣ ନିଷ୍ପତ୍ତି ନିଆଯାଇଥିଲା । ଆମ ଦେଶ ଭାରତ ମଧ୍ୟ ଏହି ଅଧିବେଶନରେ ଯୋଗଦେଇ ପରିବେଶର ସୁରକ୍ଷା ପାଇଁ ଓ ପ୍ରଦୂଷଣର ନିରାକରଣ ପାଇଁ ଦୃଢ଼ ମନ୍ତବ୍ୟକ୍ତ କରିଥିଲା ।

ଆମ ଦେଶର ସମ୍ବିଧାନରେ ମଧ୍ୟ ପ୍ରାକୃତିକ ପରିବେଶର ସୁରକ୍ଷା ଏବଂ ସଦୁପଯୋଗ ପାଇଁ ଯଥେଷ୍ଟ ଗୁରୁତ୍ୱ ଆରୋପ କରା-ଯାଇଛି । ରାଜ୍ୟସରକାରମାନେ ଏ ଦିଗରେ ଯତ୍ନଶୀଳ ହେବାପାଇଁ ସମ୍ବିଧାନରେ ପରାମର୍ଶ ଦିଆଯାଇଛି । ଏହି ପ୍ରାକୃତିକ ପରିବେଶର ସୁରକ୍ଷା ଓ ରକ୍ଷଣାବେକ୍ଷଣ ପାଇଁ ପ୍ରାୟ ଶତାଧିକ ଆଇନ ଭାରତରେ ରହିଛି; କିନ୍ତୁ ପ୍ରକୃତ କ୍ଷେତ୍ରରେ ତାହା କଡ଼ାକଡ଼ି ଭାବରେ ପାଳନ କରାଯିବା ଉଚିତ ।

୧୯୦୫ରେ ବଙ୍ଗରେ ଓ ୧୯୧୨ରେ ବମ୍ବେରେ ବାୟୁ ପ୍ରଦୂଷଣକୁ ରୋକିବା ପାଇଁ ଧୂମ କ୍ଷତିକାରକ ଆଇନ ପ୍ରଣୟନ କରାଯାଇଥିଲା । ଏହାଥିଲା ପ୍ରଥମ ପଦକ୍ଷେପ । ବର୍ତ୍ତମାନ ଏହି ବାୟୁ ପ୍ରଦୂଷଣ ବିଶ୍ୱବ୍ୟାପୀ ଓ ଏହାର ନିୟନ୍ତ୍ରଣ ଓ ନିରାକରଣ ପାଇଁ ପୃଥିବୀବ୍ୟାପୀ ଚିନ୍ତା ଓ ଉଦ୍ୟମ ଚାଲୁ ରହିଛି ।

କେବଳ ଆଇନ ବଳରେ କୌଣସି ସମସ୍ୟାର ସମାଧାନ ଅସମ୍ଭବ । ଏଥିପାଇଁ ଜନସାଧାରଣଙ୍କର ଅକୁଣ୍ଠ ସାହାଯ୍ୟ ଓ ସମର୍ଥନ ଆବଶ୍ୟକ । ସେଥିପାଇଁ ଜନମତ ସୃଷ୍ଟି ହେବା ଆବଶ୍ୟକ । ପ୍ରଦୂଷଣର ଭୟାବହତା ବିଷୟରେ ସାଧାରଣ ଲୋକେ ଅବଗତ ହେବା ବାଞ୍ଛନୀୟ । ତେବେ ଯାଇ ସେମାନେ

ପ୍ରଦୂଷଣକୁ ରୋକିବା ପାଇଁ ଉଦ୍ୟମ କରିବେ । ଏକ ସୁସ୍ଥ ଓ ପ୍ରଦୂଷଣ ମୁକ୍ତ ପରିବେଶ ସୃଷ୍ଟି କରିବା ଆମ ସମସ୍ତଙ୍କର ନୈତିକ କର୍ତ୍ତବ୍ୟ । ନହେଲେ ଆମେ କେହି ସୁସ୍ଥ ମନ ଓ ଶରୀରରେ ବଞ୍ଚି ରହି ପାରିବା ନାହିଁ ।

ନାଗପୁରର ଜାତୀୟ ପରିବେଶ ଇଞ୍ଜିନିଅରିଂ ଗବେଷଣା ସଂସ୍ଥା ଦ୍ୱାରା ଆୟୋଜିତ ହୋଇଥିବା ଏକ ସର୍ବେକ୍ଷଣରୁ ଜଣାପଡ଼ିଛି ଯେ ମାଡ୍ରାସ, ବମ୍ବେ, କଲିକତା, ଦିଲ୍ଲୀ ଓ ହାଇଦ୍ରାବାଦ ପ୍ରଭୃତି ନଗରଗୁଡ଼ିକର ବାୟୁମଣ୍ଡଳରେ ସଲଫର୍ ଡାଇଅକ୍ସାଇଡ୍ ଓ ଧୂଳିକଣା ଯଥେଷ୍ଟ ଭାବରେ ବୃଦ୍ଧି ପାଇଛି ।

ବିଶ୍ୱସ୍ୱାସ୍ଥ୍ୟ ସଂସ୍ଥାର ଗବେଷଣା ଅନୁସାରେ ମଣିଷର ଶ୍ୱାସକ୍ରିୟା ପାଇଁ ବାୟୁରେ ଧୂଳିକଣାର ପରିମାଣ ବର୍ଗମିଟରରେ ପ୍ରତି ୪୦ ମାଇକ୍ରୋଗ୍ରାମ ହେଲେ ଏହା ଶରୀର ପକ୍ଷରେ କ୍ଷତିକାରକ ନୁହେଁ । କିନ୍ତୁ ହିସାବରୁ ଜଣାଯାଇଛି ଯେ ଉପରୋକ୍ତ ନଗର-ଗୁଡ଼ିକରେ ଧୂଳିକଣାର ପରିମାଣ ତିନି ଗୁଣରୁ ଅଧିକ ଏବଂ କଲିକତା ମହାନଗରୀରେ ଏହା ସବୁଠାରୁ ଅଧିକ ।

ବାୟୁ ପ୍ରଦୂଷଣର ନିୟନ୍ତ୍ରଣ ନିମନ୍ତେ ଭାରତ ସରକାର ବାୟୁପ୍ରଦୂଷଣ ( ନିୟନ୍ତ୍ରଣ ଓ ପ୍ରତିରୋଧ ) ଅଧିନିୟମ ପ୍ରଣୟନ

କରିଛନ୍ତି ଓ ତାହା ୧୯୮୧ ମସିହାରୁ ବଳବତ୍ତର ରହିଛି । ଗାଡ଼ି-ଘୋଡ଼ାଗୁଡ଼ିକ ବିଷାକ୍ତ ଗ୍ୟାସ୍ ବାୟୁମଣ୍ଡଳକୁ ଛାଡ଼ୁଥିବାରୁ ଇନ୍ଧନ ଗୁଡ଼ିକର ବ୍ୟବହାର ଉପରେ ନିଷେଧାଜ୍ଞା ଜାରି କରିବା ନିମନ୍ତେ ରାଜ୍ୟ ସରକାରମାନଙ୍କୁ କ୍ଷମତା ପ୍ରଦାନ କରାଯାଇଛି ।

ଜଳର ଅନ୍ୟନାମ ଜୀବନ । ମଣିଷ ଜଳ ବିନା ବଞ୍ଚି ରହି ପାରିବ ନାହିଁ । ଏହି ଜଳ ପ୍ରଦୂଷଣକୁ ରୋକିବା ପାଇଁ ଭାରତ ସରକାର ମଧ୍ୟ ଆଇନ ପ୍ରଣୟନ କରିଛନ୍ତି । ଜଳ ପ୍ରଦୂଷଣ ( ନିୟନ୍ତ୍ରଣ ଓ ପ୍ରତିରୋଧ ) ଅଧିନିୟମ ମାର୍ଚ୍ଚ ମାସଠାରୁ ବଳବତ୍ତର ରହିଛି ।

ପବିତ୍ର ଗଙ୍ଗାନଦୀର ଜଳକୁ ଆମେ ତୀର୍ଥ ଜଳ ବୋଲି କହୁ । ଏଥିରେ ସ୍ନାନ କଲେ ପାତକ ନାଶ ହୁଏ । ଏହା ହିନ୍ଦୁ ଶାସ୍ତ୍ରର ବିଶ୍ୱାସଧାରା । ଗଙ୍ଗା ଆଜି ପ୍ରଦୂଷଣର ଶୀର୍ଷ ଦେଶରେ ଉପନୀତା ହୋଇଥିବାରୁ ଆମର ପ୍ରଧାନମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ କେନ୍ଦ୍ରୀୟ ଗଙ୍ଗା କର୍ତ୍ତୃପକ୍ଷ ଗଠନ କରାଯାଇଛି ।

ପାବନୀ ଗଙ୍ଗାକୁ ପ୍ରଦୂଷଣ ମୁକ୍ତ କରିବା ଲାଗି ୨୯୩ ଲକ୍ଷ ଟଙ୍କାର ଏ ଯୋଜନା କାର୍ଯ୍ୟକାରୀ ହେଉଛି । ପ୍ରାଥମିକ ଭାବରେ

ହରଦ୍ୱାର ଓ ଋଷିକେଶ ଠାରେ ଗଙ୍ଗାଜଳର ବିଶୋଧନ କାର୍ଯ୍ୟ ଶେଷ ହୋଇଛି । ଏଥିପାଇଁ ୧କୋଟି ଟଙ୍କା ବ୍ୟୟ ହୋଇଛି । ଏହା ଏକ ମହତ୍ତ୍ୱ ଉଦ୍ୟମ ।

ପରିବେଶର ସୁରକ୍ଷା ଓ ପ୍ରଦୂଷଣର ପ୍ରତିରୋଧ ଓ ନିୟନ୍ତ୍ରଣ ପାଇଁ ଏବେ କେନ୍ଦ୍ର ସରକାର 'ପରିବେଶ ବିଭାଗ' ନାମରେ ଏକ ସ୍ୱତନ୍ତ୍ର ବିଭାଗ ଖୋଲିଛନ୍ତି । ୧୯୭୨ରେ ପ୍ରତିଷ୍ଠିତ ଜାତୀୟ ପରିବେଶ ଯୋଜନା କମିଟି ଏକ ଉପଦେଷ୍ଟା ସଂସ୍ଥା ହିସାବରେ କାର୍ଯ୍ୟ କରୁଅଛି ।

ପ୍ରତ୍ୟେକ ରାଜ୍ୟରେ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ ଗଠନ କରାଯାଇ ପ୍ରଦୂଷଣ ନିୟନ୍ତ୍ରଣ ଓ ସୁସ୍ଥ ପରିବେଶ ପାଇଁ ଉଦ୍ୟମ କରୁଛନ୍ତି । ଏ ଦିଗରେ ଏହି ସଂସ୍ଥାମାନେ ଜନମତ ସୃଷ୍ଟି କରି ଏହାର ଭୟାବହତା ସମ୍ପର୍କରେ ସାଧାରଣ ଲୋକଙ୍କୁ ଅବଗତ କରାଉଅଛନ୍ତି । ପ୍ରଦୂଷଣ ନିୟନ୍ତ୍ରଣ ପାଇଁ ବୋର୍ଡ଼ ପକ୍ଷରୁ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଯାଉଛି । ଏକ ସୁସ୍ଥ ଓ ସୁନ୍ଦର ପରିବେଶ ସୃଷ୍ଟି କରିବା ଏହାର ଲକ୍ଷ୍ୟ ହୋଇଛି । ଆମ ରାଜ୍ୟ ଓଡ଼ିଶାରେ ମଧ୍ୟ ଏପରି ଏକ ବୋର୍ଡ଼ ଗଠିତ ହୋଇଛି ।

ପରିବେଶ ପ୍ରଦୂଷଣ ସମ୍ପର୍କୀୟ ମୋକଦ୍ଦମା ଓ ମାମଲା-ଗୁଡ଼ିକୁ ବିଚାର କରିବା ଲାଗି ପ୍ରତ୍ୟେକ ରାଜ୍ୟରେ ପରିବେଶ ଅଦାଲତ ଗଠନ କରାଯିବା ପାଇଁ ବ୍ୟବସ୍ଥା ହେଉଛି । ଓଡ଼ିଶା



ନିମନ୍ତେ ଯେଉଁ ପରିବେଶ ଅଦାଲତ ଗଠନ କରାଯିବାର ବ୍ୟବସ୍ଥା ହେଉଛି, ସେଥିରେ ଜଣେ ବିଚାରପତି ଓ ଦୁଇଜଣ ପରିବେଶ ବିଜ୍ଞାନୀ ରହିବା ପାଇଁ ସ୍ଥିର ହୋଇଛି ।

ପରିବେଶ ପ୍ରଦୂଷଣ ସମ୍ପର୍କରେ ଷାଠିଏ ଦିନିଆ ନୋଟିସ୍ ଦେବା ପରେ ଯେ କୌଣସି ଲୋକ ବା କୌଣସି ସ୍ୱେଚ୍ଛାସେବୀ ସଂସ୍ଥା ପରିବେଶର ସୁରକ୍ଷା ପାଇଁ ଆବେଦନ କରି ପାରିବେ ।

ଏହା ଫଳରେ ପରିବେଶର ସୁରକ୍ଷା ଲାଗି ନୂତନ ଦିଗନ୍ତ ଉନ୍ମୋଚିତ ହେବ ।

ପରିବେଶକୁ ପ୍ରଦୂଷଣ ମୁକ୍ତ ରଖି ଏକ ସୁସ୍ଥ ପରିବେଶ ସୃଷ୍ଟି କରିବା ଆମ ସମସ୍ତଙ୍କର ନୈତିକ କର୍ତ୍ତବ୍ୟ । ନହେଲେ



ଆମେମାନେ ସୁସ୍ଥ ଭାବରେ ବଞ୍ଚି ରହିବା ପାଇଁ ଅକ୍ଷମ ହୋଇ-ପଡ଼ିବା । ସୁସ୍ଥ ମନ ପାଇଁ, ସୁସ୍ଥ ଶରୀର ପାଇଁ ସୁସ୍ଥ ପରିବେଶ ଆବଶ୍ୟକ । ପ୍ରଦୂଷିତ ପରିବେଶ ମଧ୍ୟରେ ବଞ୍ଚିଥିବା ଲୋକ ଭୟଙ୍କର ରୋଗ ଓ ବ୍ୟାଧିର ସର୍ବଦା ଶିକାର ହେବ । ତା'ଛଡ଼ା ପ୍ରଦୂଷିତ ପରିବେଶ ଏ ସୁଜଳା ସୁଫଳା ଧରିତ୍ରୀ ମାତାକୁ ଏକ ବିରାଟ ମରୁଭୂମିରେ ପରିଣତ କରିଦେବ ।

ପରିବେଶର ସୁରକ୍ଷା ପାଇଁ ଆଇନ ଯେତିକି ଦରକାରୀ, ଜନ ସହଯୋଗ ଓ ସମର୍ଥନ ତା'ଠାରୁ ଅଧିକ ଦରକାରୀ । ପରିବେଶର ସୁରକ୍ଷା ଆଜିର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ । ଏହା ମଣିଷ ଜାତିର ବଞ୍ଚିବାର ପ୍ରଶ୍ନ । ଯେଉଁଭଳି ଭାବରେ ନଭମଣ୍ଡଳ, ବାୟୁମଣ୍ଡଳ, ସ୍ଥଳଭାଗ ଓ ଜଳଭାଗ ପ୍ରଦୂଷିତ ହେବାରେ ଲାଗିଛି, ତା'ର ଭବିଷ୍ୟତ ଅନ୍ଧକାରମୟ ବୋଲି ଜଣା ପଡ଼ୁଛି । ଏ ବିପଦ ଏକୁଟିଆ କାହାପ୍ରତି ଉଦ୍ଦିଷ୍ଟ ନୁହେଁ । ଏହା ସମଗ୍ର ମଣିଷ ଜାତିକୁ ଆଚ୍ଛନ୍ନ କରି ରଖିଛି ।

ବୃକ୍ଷରୋପଣ, ଜଙ୍ଗଲ ସୃଷ୍ଟି, ବଣ ଜଙ୍ଗଲର ସୁରକ୍ଷା ଓ ସାମାଜିକ ବନୀକରଣର ତାତ୍ପର୍ଯ୍ୟ ଆଜି ସମଗ୍ର ମାନବ ଜାତି ଆଗରେ ଏକ ବିରାଟ ଆହ୍ୱାନ । ଏ ଆହ୍ୱାନକୁ ଗ୍ରହଣ କରିବାକୁ ହେବ, ମୁକାବିଲା କରିବାକୁ ହେବ ଓ ଏ ଦିଗରେ ଆପ୍ରାଣ ଉଦ୍ୟମ କରିବାକୁ ହେବ । ତେବେ ଯାଇ ପରିବେଶର ସୁରକ୍ଷା ହେବା ସଙ୍ଗେ ସଙ୍ଗେ ମାନବ ଜାତିର ମଙ୍ଗଳ ହେବ ।

'ମଣିଷ ପାଇଁ ଗଛଟିଏ' କାର୍ଯ୍ୟକ୍ରମ ଆଜି ସମସ୍ତଙ୍କର ଧ୍ୟେୟ ହେବା ଉଚିତ । ଆମେ ଏହାକୁ ଜୀବନର ବ୍ରତ ବୋଲି ମନେ କରି ବୃକ୍ଷରୋପଣ ପାଇଁ ଶପଥ ନେବା ଉଚିତ । ଏହି ସବୁଜ

ବିପ୍ଳବରେ ନିଜକୁ ସାମିଲ କରି ଆମେ ନିଜକୁ ଗୌରବାନ୍ୱିତ ମନେ କରିବା ଉଚିତ । ଏହି ମହତ କାର୍ଯ୍ୟ ସମଗ୍ର ମାନବ ଜାତିର ହିତ ପାଇଁ, ମଙ୍ଗଳ ପାଇଁ । ଆସନ୍ତୁ ଆମେ ସମସ୍ତେ ଆଜି ପରିବେଶଟିକୁ ପ୍ରଦୂଷଣ ମୁକ୍ତ କରି ସୁସ୍ଥ ପରିବେଶ ଗଠନ ପାଇଁ ଶପଥ ନେବା ।

